# ଉତ୍କଳ-ପ୍ରଦୀପ



ପ୍ରଥମ ସଂସ୍କରଣ


ଲେଖକ — ଶ୍ରୀ ଲକ୍ଷ୍ମଣ ମିଶ୍ର

ଗ୍ରାମ — ବୀର ବଲଭଦ୍ର ପୁର ।



— ପ୍ରକାଶକ ଓ ମୁଦ୍ରାକର —

ଶ୍ରୀ ବିଶ୍ୱନାଥ ମିଶ୍ର ।

ମୂଲ୍ୟ ୬୦ ।

ଜଗନ୍ନାଥଙ୍କ ଗୋଲକ ଧାମ - ମର୍ତ୍ତ୍ୟ-ବୈକୁଣ୍ଠ,
ଯାର ଶ୍ରୀଚରଣ ରେଣୁ ଚୁମ୍ବିବା ଲାଳସେ
ସୁର ଦନୁଜଯୁ କୋଟି ଅନନ୍ତ ଅପେକ୍ଷା
ଧାଇଁ ଆସି ବାରମ୍ବାର ଲୋଟନ୍ତି ମୁହୁର୍ମୁହୁ ।
ଥିଲେ ଯେଉଁ ଇନ୍ଦ୍ରଦ୍ୟୁମ୍ନ, ମାଳବ ନୃପତି —
ସତ୍ୟ ନିଷ୍ଠ ଧର୍ମ ପରାୟଣ,—
ନୃପତି ଆଦେଶ ଘେନି ଆସିଥିଲେ ଏଥି
ବିଦ୍ୟାପତି ଦ୍ୱିଜୋତ୍ତମ—ଅମିତ ତେଜସ୍ୱ
ଭେଟିବାକୁ ବିଭୁପଦେ ମର୍ତ୍ତ୍ୟଲୀଳା ଭୂମେ ।

ଶବରେ ଯୋଗାଇଲ ଧନ୍ୟ ନୀରବେଦ ଘେନି
ନିରେଖିଲେ ମୁଗ୍ଧ ଯେଉଁ ଶ୍ରୀନୀଳକନ୍ଦରେ
ଅଖିଳ ବ୍ରହ୍ମାଣ୍ଡ ପତି ଶ୍ରୀନୀଳମାଧବେ ।
କାମଧେନୁ ସମସ୍ତା — ମର୍ତ୍ତ୍ୟ-ବାଞ୍ଛାକୁଣ୍ଡ
ବିଶ୍ୱପ୍ରେମ ମହାମନ୍ତ୍ର ଘୋଷେ ନିରନ୍ତର ।
ନମସ୍କାର ଜନ୍ମଭୂମି — କର ନମସ୍କାର ।

ଗୁରୁ— କହ ତୁମ୍ଭେ ଜାଣ ଯେବେ କିଛି
ପୁରୀ ସନ୍ନିକଟେ ଅଛି କେଉଁ ପୁଣ୍ୟ ପୀଠ ?

ଶିଷ୍ୟ— ହରଚଣ୍ଡୀ ରାମଚଣ୍ଡୀ ମହାଶକ୍ତି ବେନି
ଜଗନ୍ନାଥ କୂଳପାଶେ ରହିଣି ମହାର୍ଣ୍ଣେ ।
ସ୍ୱାଧୀନ ଉତ୍କଳ-ଧନ-ବିଭବ-ଲୋଲୁପ
ଅସୁଥିଲେ ଅରି ଯେବେ ଜଳପଥ ଦେଇ,
ରାମଚଣ୍ଡୀ ହରଚଣ୍ଡୀ ତ୍ରିମୂର୍ତ୍ତି ମାଳିନୀ

ଜାଗ୍ରତରେ ଆହ୍ୱ ଶକ୍ତି ଅମର-ଚେତନା
କୋଟି ପ୍ରାଣେ ଉଠାଉଛି ନବୀନ ଝଙ୍କାର ।
ଅମୃତରେ ଗୋପବନ୍ଧୁ—ତାର ଅମରତେ—
ଉତ୍କଳ ଜାତିର ତାର ନମସ୍ୟ ଦେବତା !!!

ଗୁରୁ—ତାର ପରେ ଜାଣି ତୁମ୍ଭେ ବତ୍ସ,
ଘଟିଅଛି ଅଉ କେଉଁ ପ୍ରସଙ୍ଗ ବିପତ୍ତି ?

ଶିଷ୍ୟ—ଜାଣେ ଗୁରୁ ଦେବ ।
ଦେଶର ନାମ ପ୍ରସଙ୍ଗ ପିପିଲି ପ୍ରଥମ —
କାରୁଗତ ସାକ୍ଷୀ ତାର ଅତୁଳ ଗୁଡ଼ିଆ
ଅଦ୍ୟାବଧି ରହିଅଛି ଚୀନ ଦରବାରେ ।
ଦକ୍ଷିଣାଂଶେ ଗଲେ କଟ୍ଟିପଥ—
ଗଜପତି ରାଜଧାନୀ ଖୋରଧା ନଗରୀ
କରେଛି ବହୁ ଶତ-ଲକ୍ଷ ଓଡ଼ିଆ ସେନାର
ଅତୀତ ଗୌରବଗାଥା ବୀରତ୍ୱ କାହାଣୀ
ଦେଖାଉଛି ଜଣେ ଜଣେ, ଛାଡ଼ି ଦୀର୍ଘଶ୍ୱାସ ।
ଖୋରଧା ଗଡ଼ର ଭଗ୍ନ ଶିଳା ସ୍ତୂପ ଦେଖି
କ୍ଷୋଭ ଜର୍ଜରିତ ବାଣୀ ଧ୍ୱନେ ଗମ୍ଭୀରେ
ମୁକୁନ୍ଦ—ଉତ୍କଳ ଶେଷ ସ୍ୱାଧୀନ ନୃପତି—
ଯାହା ସେ ଜନନୀ କିବା ପୂତ ପୁଣ୍ୟ ଫଳ
ନିନ୍ଦିଲେ ରାମଚନ୍ଦ୍ର, ବିଶ୍ୱାସ ଘାତକ—
ତେବେ ଭାଗ୍ୟ ଗଗନରୁ ହେଲେ ଚିର ଅସ୍ତମିତ
ସ୍ୱାଧୀନତା ଦିନମଣି ତାଙ୍କ କର୍ମଫଳେ ।

ଦେଖିଛି ମୁଁ ଅନୁଭବ ଯୁଗ ଯୁଗ ବ୍ୟାପୀ—
ଅତୀତ ଅନ୍ଧାରମୟ ଅନନ୍ତ ଗରଭେ ।

କୋଟି କୋଟି ଓଡ଼ିଆର ବଂଶଧର ଅଙ୍କ
ଗୋଟିଏ ସନ୍ତାନ ମାଙ୍ଗ ଅଛ ଯନ୍ଧ ଦେହୁ,
ଆସ ଭାଇ ଏହିକ୍ଷଣେ ନିର୍ଭିକ ଅନ୍ତରେ—
ଟାଣିନିଅ ମୃତ୍ୟୁଗରର ସମାଧି ଟେଭୁଁ ।
ଚିଅଡ଼ାଇ ତୁମ୍ଭ ପାଶେ ଦେଖେଁ ମର୍ତ୍ତ୍ୟଧାମ—
ଦେଖେଁ ଥରେ ପ୍ରିୟ ଏମାର ଦୁର୍ବୋରଘାଟୀ ।
ଦେଖେଁ ପୁଣି ଓଡ଼ିଆର ବାହୁବଳ ନେଇ—
ଲଂଘି କଳାପାହାଡ଼-'ବିଜୟ ଗର୍ବିତ
ହିମାଚଳ ସୀମା ଲଂଘି ଅଟେସ କିଏ ଦେଶେ ।
ଶୁଣିପାଏଁ ଥରେମାତ୍ର ଶୁଣାଇ ଜଗତେ
—ସ୍ୱାଧୀନ ଓଡ଼ିଆଜାତି-ସ୍ୱାଧୀନ ଉତ୍କଳ—।"

ଅଦୂରେ ବରୁଣୀ ଶିରେ ଦେଖୀ କ୍ରୀଡ଼ାଙ୍ଗ
ଚନ୍ଦ୍ରାସେ ଦିଅନ୍ତି କରତାଳି ଘନ ଘନ ।

ଦଧୀଚି ମୁନିପୁଙ୍ଗବ-ପୁଣ୍ୟ ସ୍ମୃତି
ଅମ୍ବରେ ଶିଖାଳ ଏ ଯଞ୍ଜଳନ ସାର
ତପସ୍ୱିନୀ ବେଶେ ବନ୍ଦେ ଦୟା ସ୍ରୋତସ୍ୱିନୀ
ତ୍ୟାଗ ଧର୍ମ ଗୀତା ଗାଇ ବହୁଣୀ ତରଙ୍ଗେ ।

ଧନ୍ୟ ତୁମ୍ଭ ଦୟା ଅଛି ଧନ୍ୟ ତୋର ଗୁରୁ—
ଦେଶ ହିତ ପାଇଁ କଲେ ଜୀବନ ଉତ୍ସର୍ଗ !

ଭଗ୍ନ କାଳଗର୍ଭେ ଲୁଚିଲେ ସରବେ ।
ଧଉଳି-ଉଦୟଗିରି ଖଣ୍ଡଗିରି ଏବେ
ଦେଖାନ୍ତି ସେ ଅତୀତର କାର୍ଯ୍ୟ ବିବରଣୀ—
ବକ୍ଷେ ଧରି ଶିଳାଲିପି ଧର୍ମାନୁଶାସନ ।
ହିନ୍ଦୁ-ବୌଦ୍ଧ-ଜୈନ ଆଦି ଧର୍ମ ନିର୍ବିଶେଷେ
ସକଳେ ପ୍ରଣତ ତହିଁ ଭକ୍ତିଭରେ ଅଜ,
ପ୍ରଣାମ କର ହେ ଶିଷ୍ୟ—
ଜଣାଅ ସେ ଗିରିଗଣ ପଦେ ନମସ୍କାର ।

ଗୁରୁ—ତାରପରେ କହିଯାଅ ତୁମ୍ଭେ
ଥାଏ ଯଦି ଅନ୍ୟ କିଛି ପ୍ରାଚୀନ ଗୌରବ ।

ଶିଷ୍ୟ—ପୁରାଣ ପ୍ରସିଦ୍ଧ ତହିଁ ଏକାମ୍ର କାନନ
କଳିଯୁଗ କଇଳାସ ପୁରୀ
କେଶରୀ ନୃପତିକୁଳ-ବିଶାଳ କୀରତି
ସଙ୍ଗେ ମିଳି ଓଡ଼ିଆର ଶିଳ୍ପ ଗଉରବ
ଉଡ଼ାଏ ନିଶାଣ ଯହିଁ ବଡ଼ିମା ଦେଖାଇ
ଅଭ୍ରଭେଦୀ ଲିଙ୍ଗରାଜ ଦେଉଳ ଶିଖରେ ।
ସିଦ୍ଧେଶ୍ୱର ମୁକ୍ତେଶ୍ୱର ମନ୍ଦିର ନିଚୟ
ଗରବେ ଉନ୍ନତ ଶିରେ ଡାକନ୍ତି ଜଗତେ—
"ଦେଖାଅ କେ ସମକକ୍ଷ ଲଭିଛି କୀର୍ତ୍ତି
ଅଦ୍ଭୁତ ଏ ଶିଳ୍ପକଳା ପରିପାଟୀ ଦେଖି ।"
ଗୁହାକାରୁ ବିଶୋଭିତ ଅସଂଖ୍ୟ ମନ୍ଦିର
ଛିଡ଼ା ତହିଁ ଠାବେଠାବେ ପ୍ରାନ୍ତରେ କାନନେ ।

ଶିବଭକ୍ତ ମହାମନା ଭୂପତି ମଣ୍ଡଳୀ
ଅର୍ପିଲେ ଧନମନ ପ୍ରାଣ ବିନିମୟେ
ନିର୍ମାଣିଲେ କେତେ କେତେ ସୁରମ୍ୟ ମନ୍ଦିର !
ମଣୁଥିଲେ ସତେ କିବା ଶିଶୁ ଧୂଳିଖେଳ !
ପ୍ରତେ ହୁଏ, ଖୋଜିଥାନ୍ତା ଜନ୍ମଭୂମି ଯେବେ —
ଗଢ଼ିଥାନ୍ତେ ଶକ୍ତିବଳେ ବିନ୍ଧ୍ୟ ହିମାଳୟ !
ଭୁବନେଶ୍ୱର ଦେବ ଜମ୍ବୁ ସ୍ତବ ଗାଇ
ବହନ୍ତି କାନନ ପଦେ ନିର୍ମଳ ନିର୍ଝର ।
ରୂପେ ଗୁଣେ ଆସ୍ୱାଦନେ ଅନୁପମ ନୀର
କେଦାର ଗଉରୀ ତହିଁ ଲଭିଛନ୍ତି ଖ୍ୟାତି !
ଦେବଦେବ ଦିଗମ୍ବର ଚିତ୍ତ ବିନୋଦନେ
ଢାଳିଛନ୍ତି ପ୍ରକୃତିରାଣୀ ସକଳ ବିଭବ ।
ପଞ୍ଚମହାଭୂତ ତହିଁ ପଞ୍ଚାମୃତ ସମ
ଦିଅନ୍ତି ଅଗମ ଯୋଗୀ ପାପୀ ତାପୀ ପ୍ରାଣେ ।
ସମ୍ମିଳିତ ଚକ୍ରବିନ୍ଦୁ ଓଡ଼ିଆ ପୁଅରେ
ଖେଳନ୍ତି ଲହରୀ ତୋଳି ବିନ୍ଦୁ-ସରୋବରେ
ଜୀବନ୍ତ ସେ ଜାଗ୍ରତସେ ସଂସ୍କୃତ ସଙ୍କେତ ।
ନମସ୍କାର — ଶତବାର ଦେବ ନମସ୍କାର ।

ଗୁରୁ — ଶରତର ନୀଳାକାଶ ପରି
ଦିଶେ ଏହି ଯେଉଁ ଖଣ୍ଡ ଜିଲାର ଦକ୍ଷିଣେ,
କହିଦିଅ — ଜାଣେ ଯେବେ କିଛି ତା ସମ୍ବନ୍ଧେ ।

ଶିଷ୍ୟ — "ଉତ୍କଳ-କମଳା-ବିଳାସ-ଦୀର୍ଘିକା"

କିଛିଦୂରେ ବାଣପୁର,—ପାଳୁଛନ୍ତି ଯାକୁ
ଚଉପାଶେ ଗିରିବୃନ୍ଦ-ଦେହରକ୍ଷୀ ରୂପେ ।
ଇନ୍ଦ୍ର ନୀଳମଣି କାନ୍ତି- ବିରାଟ ବିମାନ
ହୁଅଇ ପ୍ରତୀତ ତହିଁ ଶୈଳସ୍ଥ ଶିଖରୀ ।
ବଜ୍ରକୀଟରୂପେ କାଟି ସତୀ କଳେବର
ଫିଙ୍ଗିଥିଲେ ଦିଗମ୍ବର ଯେବେ,—
ଏକଅଂଶ ପଡ଼ିଥିଲା ଏହି ବାଣପୁରେ ।
ପ୍ରସିଦ୍ଧ ସେ ମହାଶକ୍ତି ଭଗବତୀ ନାମେ ।

ଗୁରୁ—ଏକାମ୍ର କାନନ ଛାଡ଼ିଗଲେ ପୂର୍ବୋତ୍ତରେ
କହ ତୁମ୍ଭେ କି ଦେଖିବ ପଥେ ଭଲସ୍ଥାନ ?

ଶିଷ୍ୟ—ଦୟାତୀରେ ବାଲକାଟି ବୃହତ ବସତି ।
ପିତଳ କଂସା ବାସନ କାରିଗରି ଯୋଗେ
ଲଭିଛି ସେ ବହୁକାଳୁଁ ଠେକ ଉତ୍କଳରେ ।
ମୋଗଲ ସମ୍ରାଟ ପ୍ରିୟ ବ୍ୟବହାର ପାଇ
ହୋଇଥିଲା ଦିନେ ମଧ୍ୟ କାରିଗରି ତାର ।
କିଛିଦୂରେ କେନ୍ଦୁବିଲ୍ୱ-- କେନ୍ଦୁଲୀ ନାମରେ
ଜୟଦେବ ଜନ୍ମଭୂମି ଦେଉଛନ୍ତି ଚିହ୍ନାଇ ।
ଏହିପଥେ ନିମାପଡ଼ା ଗୋପ ଅଛି ପୁଣି
କୃଷ୍ଣ ଲୀଳା ଭୂମି ସତେ ଥିଲାକି ଦ୍ୱାପରେ ?
ସକଳ ମଙ୍ଗଳମୟୀ ଶ୍ରୀମହା ମଙ୍ଗଳା
ପ୍ରକଟ କାକଟପୁରେ ସିନ୍ଧୁ ସନ୍ନିକଟେ ।
ମହାମାନବ ମହାତ୍ମା ଗାନ୍ଧୀ ଉପଦେଶ

ଆରମ୍ଭିଲେ ସତ୍ୟାଗ୍ରହ ବାହିନୀ ଯେଝାଳେ
ଲବଣମର୍ଷ ଅଭିଯାନ, ବାଜିଲ ଦୁନ୍ଦୁଭି,---
ଉଠିଲେ ଜନନୀ ବୋଲୁଁ ଶିଶୁ ବାଳବୃନ୍ଦ-
ଗୁଲଲଠି ପଦେ ଶିର ସମର୍ପି ଅନନ୍ଦେ
ଦେଶପାଇଁ-ଜାତିପାଇଁ ତେଜି ପ୍ରାଣମାୟା
ରଚିଲେ ଶକଟ ବ୍ୟୁହ ସତ୍ୟାଗ୍ରହଯୁଦ୍ଧେ ।
ମଙ୍ଗଳା ମଙ୍ଗଳଇଚ୍ଛା ଲଭି ଅବହେଳେ
ଝଟରଲେ ବିଜୟ ଟୀକା ନେଇ ଭାଲପଟେ
ଜାତିର ସମ୍ପଦ ଆଜି- ଦେଶର ଗୌରବ
ସେହି ବାଳବୃନ୍ଦ,- ତେଣୁ ଅବନତଶିରେ
ପ୍ରଣତ ହୁଅହେ ଭାଇ ସେ ପ୍ରତିଭା ପାଶେ ।

ଗୁରୁ — ସିନ୍ଧୁ ଉପକୂଳେ ଏହି ବନ୍ଦୁଦିଆ ସ୍ଥାନ
ଦେଖିଛକି ତୁମ୍ଭେ ବତ୍ସ ?

ଶିଷ୍ୟ — ଦେଖିନାହିଁ — ଶୁଣିଛି ମୁଁ ତାହା —
ଅର୍କତୀର୍ଥ-ଚନ୍ଦ୍ରଭାଗା-ପୁରାଣ ପ୍ରସିଦ୍ଧ,
ଯାର ତଟ ନିକଟନେ ରବିପୂଜା କରି
ଶାପମୁକ୍ତ ହେଲେ ଶାମ୍ବ ଦ୍ୱାଦଶ ବରଷେ
ନିକଟେ ପ୍ରକଟ ଥିଲା ଗୁରୁବନ୍ଦ ବନ୍ଦର ।
ଗଢୁଥିଲେ ଦେଶବାସୀ ବାଣିଜ୍ୟ ବୋଇତ
ଓଡ଼ିଆ ଶିଳ୍ପବିଶାସ୍ତ୍ର ପ୍ରଚୁର ଉଦ୍ଦେଶ୍ୟ
ଆଲୋଡ଼ି ଭାରତ ମହାସାଗର ଅନ୍ତର
ଧାଉଁଥିଲେ ମାଳମାଳ ପଣ୍ୟଭରା ଭଙ୍ଗି

ପାଉଣି ଚେତେଇ ଦିନେ ଦେଇଅଛି ବାଳି
ମିଶିଅଛି କୋଣାର୍କର ପ୍ରତି ଶିଳ ପତ୍ରେ ।”
ଓଡ଼ିଶାର ଇତିହାସ — ଓଡ଼ିଆର ମୂର୍ତ୍ତି
ଉତ୍କଳ ସାହିତ୍ୟ କାବ୍ୟ ଲେଖନୀର ଧାରେ
ଫୁଟିଛି ସେ- ଫୁଟିବ ଯୁଗ ଯୁଗାନ୍ତର
କାଳିମା ଲଗାଇ କଳଙ୍କିଲୁ କୁଳ ମୁଖେ ।
ମରିନାହିଁ ଧର୍ମ! ସେ ଅଛେଦ୍ୟ-ଅମର !!



ପୁରୀ ସରସ୍ୱତୀ ପ୍ରେସରେ ଶ୍ରୀ ରଘୁନାଥ ମିଶ୍ରଙ୍କଦ୍ୱାରା ମୁଦ୍ରିତ ।